ଢୁଷାଢୁର ହୋଇ ଢଡୁଣାପ୍ତୀ ଢରୁଧାର—ଢଡଲ ୯ରଣା "ଢପ୍ରପାଣି"ରେ ଢୁକ ହୋଇ ଢୁପ୍ରେରେ ନିବଜୁରେଣ, ନିବୃତ୍ତରଥେନ, ନିଢଙ୍କେଣ ଢାଗ୍ରପଥେନ, ଏରୋପ୍ଲେନେନ ଢେଲଙ୍ଗାବଜାର, ଢନକୋଣିଆ ବଗିଙ୍କ ଓ ଢେନ୍ନୁଲଡ଼ଙ୍ଗାର ଢାଡ଼ଖଣ୍ଡିରେ ଜାରବେଗରେ ଢାମ୍ରତୂଢ଼ ଡାକଭୁ ଢା ଛଏ ଢାଟିକ ଢଦ୍ଦ ମାରଲ । ଢାହା ଦେଖି ଢାଠକା, ଢାଠଙ୍ଗା ଓ ଢାଙ୍କବ ହେଲ୍ । ଢୁଲାକୁଠ, ଢାମ୍ରକୂଟେଢାବେଦାର, ଢଣ୍ଡକାରଢୁଲ୍ଲ ଢରଢରରେ ଢାଡ଼ଆରେ ଢାଡ଼ଆ ଢାଡ଼ଆ ଠଙ୍କାର ଢଣ୍ଡ ଢୋଢ଼ୁଛନ୍ତି । ଢାର ଢଜାବୀଜ ପାଛ ଢୁଲନାଘାନ କଲକଢା, ଢଢ଼ଢୁଲ୍ଲ ମାନ୍ଦ୍ରାଜ ଢର୍ବୁ ବଢ଼ ଢୋମ୍ବାଢୃଢା ପୃଥ୍ୱୀର ଢମାଖୁର ବଢ଼ ବପଣୀ-ଢାଲିମ ଆମସ୍ଢାଡ଼ାମ, ଢସ୍ୱାପ୍ରାଣ ଜରକାଜ ଏନ୍ଟୱାର୍ପ, ଜାର୍ମ୍ମାନିର ହାମ୍ବର୍ଗ, ଢବୁଣଜାଥ ଢଲଗାମିନୀ ଢେମସ୍ ଜରସ୍ଥ ଲଣ୍ଡନ ଢଢ଼ଢୁଲ୍ଲ ଢୋଷଖାନା ଲିଭରପୁର ଓ ଢେଜାସ୍ଗର ନଭଇମ୍ବର୍କ ଢ ଅଛୁ; ଢା ଛଢ଼ା ଢାଢ଼କା ଢମାଖୁର ଢୁମୁଲ ଢାଢ଼ନାରେ ଢିନପୁର ହସ୍ତ ।

ବିଂଶଏକ (୧୯୩୧) ସାଲରେ ଢେଇଶ ଲକ୍ଷ (୬୩୦୦୦୦୦) ଠନ ଢମାଖୁ ଢୋମ୍ବନଧ୍ୱ ଢରଙ୍ଗ ହସ୍ତ ଢପନଢଲେ ଢାମଢ଼ା ଢୁଲ୍ଲ ଢର୍ଭୋହୁଢ । ଢହିଁରୁ ଢେସ୍ତର ଅଯୁତ (୭୩୦୦୦୦) ଠନ ଢେମିଶା ଆମେରିକା ଓ ଢେଷଠ ଅଯୁତ ଠନ ଢୌର୍ଯ୍ୟନିକ ଭାରଢର । ଢେଜାସ୍ଥାନ ଗ୍ରଇନାର ଢମାଖୁରଢ ଢର୍କ୍ଷମା ନାହିଁ ! ବିଂଶ ଦୁଇ ସାଲର ଢେଖାମ୍ବାନ୍ ବ୍ରିଟିଶଙ୍କ ଢୋଲା (Custom duty)ର ଢେଷଠି ନିୟୁତ ପାଉଣ୍ଡଭୁ ଢେଶିଢ— ଢେବେ ଢାର ଢୁଲ୍ୟ ମୂଲ୍ୟ ଢୁଲନା କରନ୍ତୁ । ଢେଇଶ ଲକ୍ଷ ଠନ ଢମାଖୁ ଢୁଙ୍ଗ ମେଢାସନ ଢୁଲ୍ୟ ଢୋଲା ହେଲ—ଢାହା ଢକ୍ଷଣେ ଢୁଲା ଢୁଲ୍ୟ ଭର୍ଭୋହୁଢ ହେଲ । ଢେଣେ ଢାଲଢମାଲଜାଗ୍ର ଓଡ଼ିଶାରେ ଢନ୍ୟୁନ ପ୍ରାପ୍ତ ୩,୯୩,୩୦,୩୦୩ ଠଙ୍କା ଢେଢାଲ ଓ ଢୃଣଭୁଟୀରରୁ ଢୁଲାଢୁଲ୍ୟ ଢୁରନ୍ତ ଭର୍ଭୋହୁଢ । ଢେଭଣ କୋଟିଙ୍କ ଢୋଢ଼ା ଢୋଢ଼ା କେଢେ ଢୋଢ଼ା ଢଣ୍ଡିଢପି ଢସ୍ଥର ଢୁଲ୍ୟ ଢଢ଼ ନେଇଛୁ ।

୧୬୪୮ ର ଭୂର୍କିର ଉଣ୍ଟିକଠା ଡେିମୁରଲଙ୍ଗଙ୍କ ଉଡ଼ାଉଢ଼ ଭ୍ରରଡ ଲୁଣ୍ଠନ ଭୁଲନାରେ ଉପ୍ପର ଡାମ୍ରକୁଠର ଉଣ୍ଡଚପା ଖବ ଓ ଖଯଡର ଡ ? ଡେବେ ଡାହା କପଭ ଭୂହାଇ ଭୂହାଇ ଡେନ୍ତୃମାଧ୍ୟ ହୋଇ ଉରଲ ଉଭୂଣଙ୍କୁ ଡାକଭୁକରେ ଡାଗା ଲଗାଉଛି ଡାହା ଉଦାଉଖ କସ୍ପାଉ ।

ଡାମ୍ରକୁଠ ଉଳଭୃପେ ଉଳପୁର ଉଦ୍‌ଗଦ କରୁଛି । ବିଡାପକାସ୍ଥ ବିଭୁବନଧ୍ୱଂସୀ-ଉମୋମଯ୍ ଧୂମ୍ରପାନ, ଅଘ୍ରାଣ ଓ ଚର୍ବଣ । ଉମାସ୍‌ଭ୍ରୋ ଉଦାଯ୍ ଦେଶକୁ ଉମାଖୁ ନେଇ ଉଡଲ ଉଠକା ଉମାଖୁ ପିକା ଭୂଣ୍ଡରେ ଡେଣ୍ଣୁଥିଲେ, ଡାହା ଦେଖି ଉଦାନାନ୍ତନ ଡୋଷାମୋଦପ୍ରିୟ ଡାମ୍ବୁଲକରଙ୍କ- ବାହା ଡାଠକା ହୋଇ ଡାପୂର୍ଯ୍ୟ ନ ବୂଝି ବସ୍ତ୍ରରେ ଡେଯ୍ୟାଳଷ ଡାଝିଆ ଭୂଛା ଉରଲ ଡୋଯ୍ ଅଣି, ଡାଙ୍କ ଡାଲୁରୁ ଉଳପା ଯାଏ ଉନ୍ତାଇ ଭୂମୁଲ ଉର୍ଜନ କଲ—"ଉରୁଣ ଉରୁଣୀ, ଉମାସଭ୍ରୋଙ୍କ ଉନୁ ଭୂଦ୍ଧ ଡାଉଛି— ଡାଙ୍କୁ ଭୂରଡ ବାହ୍ର କର" । ଉପୃରେ ଉମାସ୍‌ଭ୍ରୋ ଉତ୍କାଳୀନ ସମ୍ରାଟ ଉମୋଗୁଣୀ ଜାହାଙ୍ଗୀରଙ୍କୁ ଉମାଖୁ ଦେଲେ—ଉହିଁଉଷ୍ଟରୁ ସେ ବିଭୁବନମୋହନ ଭୂଣଦ୍ରୁମ ଫଳରେ ହୁକା ଓ ଭୂଣ୍ଡ ପାଇଁ ପିକା ଉଆର ଭୃପ୍ତି ପାଇଲେ । ଡାହା ଉହୁଁ ଡାଉଫ ସିଗାର—ସିଗାରେଟ୍, ଭୁରୁଟ, ବିଡ଼ି ଉଆର ହେଲ । ଡେଓ୍ୟାସ୍ଥ, ଉହୁଢ଼, ଉ୍ୟାଗୀ, ଉଭୂର ଡାପସ ଭୂଣ୍ଡରେ—ଡୋଢ଼ମୁହିଁ ଡେଣ୍ଟେଇ ଡାମ୍ବୁଲଭୂଙ୍ଗ ଭୂଣ୍ଡରେ ଡେଣ୍ଡା ଭୂଲ ଭୂଛ ବର୍ମା ଚୁରୁଟ ବା ଠର୍ଚ୍ଚି ଡୋଫା ଦଶିଲ । ଉମାଲଉଭୂଉଳଆ ବିବାଙ୍କ ବିପଣ୍ଡକାଳଆ କଦମ୍ବମୂଳଆ ଡାଙ୍କ ଉଟ୍‌ଦରରେ ଥିଲେ । ଉତ୍‌କ୍ଷଣାତ୍ ଭୂଣଧ୍ୱଜ-ମୁରଲୀ ଡେଜ ଡେଣ୍ଡାଚୁରୁଟ୍ ଭୂଣ୍ଡରେ ଉମ୍ବୁରେ ଉଷ୍ଟନ୍ତେ ଉରୁଣୀ ଭୂକ୍ମିଣୀନାଥ ବିଭୁଲନାଶିନୀ ନସ୍ୟରେ ଉନୁକୃଷ୍ଣ ସ୍ଥଧିକାଙ୍କ ଡାନ ଭୂଠାଇ ଥାଆନ୍ତେ । ଉମାଖୁ ଉତ୍କାଳୀନ ହୋଇଥିଲେ ବିଶ୍ଳୀ ବିଲୋଚନ ଡୋଷକାସ୍ଥ ଗଞ୍ଜିକା ଡେଜ ଡାମ୍ରକୁଠ ଭୂଣ୍ଡରେ ଡାଣ୍ଡବନୃତ୍ୟ କରୁ ଥାଆନ୍ତେ ।

ଡାମ୍ବୁଲରେ ଉମାଖୁର ଗୁଣ୍ଡ, ବସ୍ତୁକାସ୍ଥ ସୁରଡ ଗବ୍ଦ ଜରଦା, ଉଷ୍ଟୁଭୂଲ ଗୁଣ୍ଡି, ଡାଲୁବ୍ୱକଡୋଲା ଚୂନପଦ୍ର, ଉଖୁରଭୂଲ ଖଇକରେ ଉମାମ

ଲେକ ଉମଉମ ହେଉଛନ୍ତି । ଢରୁଣ ଓ କିମ୍ପୁଣ୍ଡିଗଣ୍ଡା ଉରଲଆଖି ଉରୁଣୀ, ଉଳପାରେ ଭଆର ଉମାଖୁ ଉନ୍ମତ୍ତା ଦାନ୍ତରେ ଉରଉରରେ ଦେଇ ଉସ୍ଫାଷ୍ଟ ଶୁହିଁଲେ ଶ୍ୱାସ ଅଣେ । ଉରଲମତ ଭୁଣ୍ଡିଆ ଉରୁଣ ଉରୁଣୀ, ଭୁରୁଭୁରଆ, ଉଲମୁର୍ଦ୍ଧା, ଠୋଉଲା, କିଉଲଠାରୁ ଭୃଣକୁଟୀରବାସୀ ସମସ୍ତେ ଉମାଖୁର ଠେଲଦଆ । ଉମାମ ଲେକଙ୍କ ନକଠରେ ସିଗାରେଟ୍ ଡବାରେ, ଭୁଣୀରରେ ଗାକ୍ଷଣର ଭୁଲ୍ୟ ଭଆର ରହୁଛି । ଉମାଖୁର ଗାକ୍ଷଣମ ବଷ କିଭାପଭାଗିକୀ ନକୋଟିନ୍ । ଭନଷଉ ଆଉନ୍ସ୍ ଉମାଖୁରେ ଭନ ଭନ ଆଉନ୍ସ୍ ନକୋଟିନ ଭୂନ ହୋଇ ଭସ୍ତିଛି । ଡେବେ ଡେଇଶ ଲକ୍ଷ ଠନ ଉମାଖୁରେ ଭାହାର ଉହବଲ କେଡେ ?

ଉମାଖୁ ଡେଣ୍ଡିଲେ ଭୁରନ୍ତ ଥକା ଉତ୍ତେଜିତ ହୋଇ ଭାଜା ବୋଧ ହୁଏ—ଡେଣୁ ଭୃକ୍ଷଭାଙ୍କ ଲ୍ୟଭାରେ ଭୃପ୍ତିର ଭାଜମହଲ ଉଷଣେ ଭଆର ହୋଇ ଉଦ୍‌ଘଣୀଉ୍ ଶୁଲିଯାଏ । ଉତ୍ପରେ ଗାବ୍ର ନକୋଟିନ୍‌ରେ ଭାଜା ଘ୍ରାଣଶକ୍ତି, ଗାକ୍ଷ ଦୃଷ୍ଟିଶକ୍ତି, ଉଠିକା ସ୍ୱାଦ ଶକ୍ତି, ଡେଜୀୟାନ୍ ଘ୍ରାଣଶକ୍ତି ଉଥା ଉପ୍ର ହଜମ କ୍ଷମଭା ଦ୍ରୁତ୍ ଉତ୍ତେଜିତ ହୁଏ । ଉଣ୍ଡି ଭାତେ, ଭୃଷା ଡେଜ ହେଉ ଡୋମ୍ବରେ ଭୃପ୍ତି ନ ହୋଇ ଭାଡ୍-ସନ୍ତାପ-ଉରଙ୍ଗ ଦୂର୍ ଅସେ । ଉରଲମତ ଉରୁଣ ଉରୁଣୀ ଭାଜନ ଡୋଡ଼ରେ ଭାଷ୍ଟ କଳ ଉମାଖୁ ଡେଣ୍ଡି ଉନ୍ମସ୍ତ ହୋଇ ଭାକର୍ ଗାକ୍ଷଣବୃଦ୍ଧି ହଜାନ୍ତି । ଉହିଁ ଉତ୍ତାବଡ଼ ଭଆର ହୋଇ ପାରନ୍ତି ନାହିଁ । ଭାକର୍ ସ୍ନାୟୁଉନ୍ତ୍ରୀ ଭାନ୍ତ ହୁଏ । ଭୂଠ ପଥର ଭୁଲ୍ୟ ହୋଇ ଭୃକ୍ଷ ଉପ୍କର ସାଜ ଉନ୍ତୁବାୟୁ ଭୁଲ୍ୟ ଗାର୍ଯ୍ୟକ୍ ଗଭ କର ଭୃଣଧାନ୍ୟ ହୁଅନ୍ତି; ଉତ୍ଫଳରେ ଉରୁଣଗାର୍ଥ କିଷ୍ଟୁର ଗାୟକ ଉ୍ୟାଗୀ ଦ୍ୱିଷାମତ ଗାକ୍ଷି ଉରୁଣ ବୟସରେ ଉମାଖୁ ପାଇଁ ଭାଉଙ୍କ ଉହବଲ ଡୋଷରଫ କରଥିଲେ ।

ଉଉଲ୍ ଧୂଆଁରେ ଡୋବ୍ ଭଆର ଘର ଭୁଲ୍ୟ ଭାଜା ଫସଫସରେ ଉତ୍ତାବଡ଼ କାଶକଫ, ଉଚ୍ଚୋଃଧିକ ଶ୍ୱାସକଶ୍ୱାସ, ପରେ ଉକ୍ଷକ ଯକ୍ଷ୍ମା ଭୁମୂଳ ଭାଣ୍ଡବ କରେ । ଭଲ ଭଲ କର ଉନୁ ଭୂକ୍ଷ କର ଉନ୍ସାସ୍ ଉଡେଇ କିହୋଷ ଅଣେ । ଉଥାପି ଉହିଁରେ ଭୃପ୍ତ ନ ହୋଇ ଉକ୍ଷକ ଉମାଖୁ

ଢଦ୍‌ଗଢ ପ୍ରାଣୀଙ୍କୁ ଢ୍ୱକ୍‌ସାର କଋ ଟାବ୍ରାକ୍କନର ଢମାଦ ଘଝାଏ । ନ୍ଦପା ଢେଜ ଢୁଛ ପାଗଲ ହୁଏ । ଢବୁଣ ଢରୁଣୀ ଡିନଙ୍କୁଲଢୁ ଢାଢ଼ଢ ହୁଅନ୍ତି । ଢନୁପ୍ରାଣ ହୃଢପିଣ୍ଡ ଢାଲଘାନ ହୁଏ—ଢରଢର ହୋଇ ଢୁନ ହୁଏ—ଢୁନ ହୋଇ ଢକ୍ଷାବଢ଼ ଢରଢର ହୁଲେ । ନ୍ଦିଢାପରେ ଢାପିଢ ଢନୁ ମୃଗୀ-ଗ୍ରସ୍ତ ହୁଏ । ଢଲ ଢପର ଢୋଫା ଓଠ ଢ୍ୱକ୍‌ରେ, ଢଝକା ଜବାଢ଼ଢରେ, ଢୁଣ୍ଡରେ, ଢଣ୍ଢିଢପା କେନ୍‌ସାର ହୁଏ । ଢେବେ ଢହିଁଢ଼ୁ କ ଏାଣ ନାହିଁ ? ଢମାଖୁର ଢ ଢପକାର ଢଦ୍ୱବଲ ଢଲେ । ଢୁଠରେ ଢଣ୍ଡିବଣରେ ଢଢ୍‌ଷଣାଢ୍ କୋଷ୍ଠ ଢଲେଇ ନ ଆସିଲେ ଢମାଖୁ ଢ୍ୱସ୍ଥ ଢଢ଼ ଅଣେ । ଢେଣେ ଢହ୍ନି ଅଭ୍ୟାସ ଢମ୍ପାପଝା ନଏ । ଢେଣୁ ଢାର ମାୟ୍ବା-ଢାନପୁସ୍ତର ଢାନ ଢୁଝାଇ ହୁଏ ନାହିଁ; ଢେଜସ୍ୱୀ ନ୍ଦିପୁରବିଜୟୀ ଢ ଢାଙ୍କୁ ଢେଜ ପାର ନାହାନ୍ତି ! ଢନୁଢତ୍ତ୍ୱଦର୍ଶୀ ଡାକ୍ତର ଢସାରଞ୍ଜନ ଘୋଷ ଢନ୍‌ଢାଢ଼ଢ Nurnbergରୁ ଢର୍ଜମା ଢଆରଛନ୍ତି । ଢୁଲନାଘାନ ଫରାସୀ ବୈଜ୍ଞାନିକ-ଢପନ Jean Nicot ଢେରଶ ଓ ଡିନଶ ଅବ୍ଦରେ ଢଳସି ଟାବ୍ରାକୋଟିନ ବାହାର କଋ ଢାତ୍ତ୍ୱବ କଲେ । ଢାହାର ଢର୍ଜନ ଢାଲେବର, ଢାସ୍ମୁଣୀ, ଢପ୍ର ଓ ଢୁଷାରପନ୍ତ୍ରୀ ଢମାମ ଲୋକଙ୍କ ସମାନ । ଢର୍ଜନପଝୁ ଢୁଷର ଢୋଲପାଡ଼କାସ୍ତ୍ରୀ, ଢନ୍‌ନ୍ଦାସକ Leo Tolstoy ଢମାଖୁ ଢାଡ଼ନ ଢସ୍ପୃର ହୋଇ ଢାହାର ଢେଜଙ୍କୁ ଢଢ଼ ପାର ନ ଥିଲେ । ଢେଜସ୍ୱୀ ଢସୀ ବଣ୍ଢାମିଶ୍ର ଢୁଲ୍ୟ ଢାସୀ Bismarkଙ୍କ ଢର୍ଜନ ଢ୍ୱସ୍ଥ ସିଗାରେଝରେ ଢୃପ୍ତହୁଏ, ଢରଲଯାଏ । ଡିନପୁରନ୍ଦାସକ ଢେଜସ୍ୱୀ ଢପନ ନେପୋଲିଅନ ଟାବ୍ରାଢମ ଢନୁକ୍ଳେଶରେ ଢୋୟ୍ବାଢୃଢା ସେଣ୍ଟହେଲେନାରେ ଢୁଛ ନାଷଦାନ ଢ୍ୟାଗକର ନ ଥିଲେ । ଢଦ୍ରୂପ Schiller ଢଥ୍ୟରେ ଢନ୍ମୟ ହୋଇ ଢୃପ୍ତିପାଇଁ ଢୁଛ ନାଷଦାନଙ୍କୁ ଢୋଷାମଦ କରୁଥିଲେ । ଢୋଢ଼ା ଢୋଢ଼ା ପୁସ୍ତକ ଢଆରକାସ୍ତ୍ରୀ Beethoven ଢମାଖୁ ଧୂଆଁରେ ଢମାମ କୋଠରୀ ଢମସାଛନ୍ନ କଋ ଢାରଫ ଢାଜା ଢଥ୍ୟ ଲେଖିଛନ୍ତି । ଢାଢ଼ା ଢାଢ଼ା ଢୋଫା ଢୋଷକାସ୍ତ୍ରୀ ଉପନ୍ୟାସ ଲେଖକ ଶରଢଚନ୍ଦ୍ର ଢୋସ୍ତ ଢୃଣସ୍ତଜ-ଫଲ ହୁକା ଢ୍ୟାଗ ଢୁମୂଳ ବ୍ୟାପାର ମନେ କରୁଥିଲେ । ଢୁମୂଳ ଟାବ୍ରା

ସ୍ୱାଜୀତକୁ ତାମ୍ରକୁଟ ଚେଣ୍ଡି ଖାଣ୍ଣୁବୁଦ୍ଧି Laval ଦୁରନ୍ତ ତୁକାର କରୁଥିଲେ ।

ସୁତରାଂ ତାମ୍ରକୁଟର ଉଦ୍ୱୋଧାନ ପାଇଁ ସମୂଳ ଭୂଙ୍ଗଭଦ୍ରମନବଳ ଦୁରନ୍ତ ଦରକାର । ତ୍ରିରଙ୍ଗ ପତାକାତଳେ ତମାଖୁ ନସ୍ତ ହୋଇଥିଲ କନ୍ତୁ ଛଅ ମାସ ପାଇଁ ।

ଅତଃ ତରୁଣ ତମ୍ୱାଖୁଲସି ଧର ତନ୍ମୟ ହୋଇ " ତନମ୍ୟେ ତାର ତାରଣୀ " ବୋଲି ଜପ କଲେ ତଲେ ହେଲେ ତାମ୍ରକୁଟର ତାଡନ ନିଶ୍ଚିତ ।

---

# ପାନ ପ୍ରସଙ୍ଗ

ପ୍ରଭୁପ୍ରଭାବିତ ପଣ୍ଡିତ ପ୍ରହରାଜଙ୍କ ପ୍ରଣୀତ ପ୍ରକୃଷ୍ଟ ପ୍ରଜାପତି-ସ୍ଥାପିତ "ପୂର୍ଣ୍ଣଚନ୍ଦ୍ର-ଭାଷାକୋଷ"ର ପ୍ରଥମ ପୃଷ୍ଠପୋଷକ, ପ୍ରଦୀପ-ଦୀପକ-ପାଳିତ ପ୍ରଦେଶରେ ପ୍ରତିଭା-ପ୍ରସବିନୀ ବୀଣାପାଣିଙ୍କୁ ପ୍ରଣିଧାନ ପ୍ରଣପତ୍ୟ ପାଇଁ ପଣ୍ଡିତକୁଳ ପ୍ରସ୍ତୁତ । ପ୍ରତିଷ୍ଠାବାନ 'ପଦ୍ମପାଖୁଡ଼ା'ଙ୍କ ପ୍ରଣେତା ପରିଚିତ ପଦ୍ମଚରଣ ପଟ୍ଟନାୟକ ପଟ୍ଟପୁରୋଧା । ପରିପାଟୀପୂର୍ଣ୍ଣ ପରିଷଦ୍ ପ୍ରାଙ୍ଗଣରେ ପ୍ରବେଶ କରିବା ପାଇଁ ପରିଚ୍ଛନ୍ଦାନୁବର୍ତ୍ତୀ ପହଁଞ୍ଚି ପାରିଲି ନାହିଁ । ପରିମୁଣ୍ଡାଯାଇ ପରିତାପ-ପରିପ୍ଳୁତ ପ୍ରାଣରେ ପାଳେ ପୁରାତନ ପ୍ରଥାରେ ପାନର ପୂଜା ପାଇଁ ପ୍ରାର୍ଥୀ ।

ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।

ପୁରାକାଳରୁ ପାନ ପ୍ରଚଳିତ । ପଞ୍ଚମୁଖ, ପାର୍ବତୀ-ପତି, ପ୍ରଦ୍ୟୁମ୍ନ-ପିତା, ପଙ୍କ୍ତିରଥ, ପଙ୍କ୍ତିବାହୁ, ପାନପ୍ରିୟ, ପାନପାଇଁ ପାଗଳ କି ନା ପ୍ରଶ୍ନର ପରିକଳ୍ପନା ନାହିଁ; ପରନ୍ତୁ ପଞ୍ଚଦେବତା ପୂଜାରେ, ପଞ୍ଚମହାଯଜ୍ଞରେ, ପିତୃପିତାମହଙ୍କର ପିଣ୍ଡ ଦାନରେ ପାନ ପ୍ରଦାନ ପ୍ରଥା ପୁରାକାଳରୁ ପ୍ରଚଳିତ । ପୁନଶ୍ଚ ପଞ୍ଚାମୃତରେ, ପ୍ରଜାପତି ଓ ପଣ୍ଡିତ ପରିଷଦରେ, ପଞ୍ଚମକାରରେ, ପୁଅଣିଢରେ, ପିକ୍‌ନିକ୍ (Picnic) ପ୍ରଭୃତି ପ୍ରମୋଦ-ଭୋଜୀ ପ୍ରାନ୍ତରେ, ପରପୁଷ୍ଟା ପୁରରେ, ପୌରୋହିତ୍ୟମୁଖରେ ପାନ ପିକ ପଚ୍ ପଚ୍ । ପାରାଡାଇଜ୍ (Paradise) ପୀଠରେ ପିକପ୍ରିୟ, ପିକବଲ୍ଲଭ, ପିକରାଗ, ପ୍ରେୟସୀମୁଖ, ପକ୍ୱାମ୍ର ପାନ ଭୋଜନ ପରେ ପାନର ପ୍ରତ୍ୟାଶୀ । ପ୍ରଣୟୀ ପାତ୍ରପାତ୍ରୀ ପରିଣୟ-ପରିକଳ୍ପନାର ପରମ ପ୍ରତିଜ୍ଞା ପାଇଁ ପାରମ୍ପରିକ "ପାନଠେକା" ପ୍ରଥା ପାଖରେ "ପେପାର ରେଜେଷ୍ଟ୍ରେସନ" ପରାଭୂତ । ପାନଠେକା ସମୟରେ ପକା ହଅ ପାନ (ସୁଟେବୁଲ ରୁପେଲ) ପାଟିରେ ପୂରାଇଲେ ପରକାଳ ପର୍ଯ୍ୟନ୍ତ ପାଟିରୁ ପାଠଲ ପଯୁଂପ୍ରଣାଳୀ ପ୍ରସରୁଥିବ । ପଙ୍କ୍ତିବାହୁପୁଷ୍ଟ ଲଙ୍କାର ପ୍ରଣୟୀ ପାଣିପୀଡ଼ନ ପୂର୍ବରୁ ପ୍ରଣୟିନୀଙ୍କୁ ପାନ

ପ୍ରେରଣ କରେ । ପାନ ପାର୍ଶ୍ୱିଦ୍ୱାରା ପୂଜିତ ହେଲେ ପରିଣୟ-ପ୍ରସ୍ତାବ ପାକଲ ହୁଏ; ପ୍ରତ୍ୟାଖ୍ୟାତ ହେଲେ ପଣ୍ଡିତଂମନ୍ୟ ପଙ୍ଗପାଲ ପ୍ରାୟ ପେଗ୍‌ହୋନଅ ବୋଟାନକେଲ୍ ଉଦ୍ୟାନରେ ପରିଭ୍ରମଣ କରି ପ୍ରକୃତିସ୍ଥ ହୁଏ ।

ପାନ ପ୍ରତିଷ୍ଠିତ ହିନ୍ଦୁ-ପଠାଣର ପ୍ରୀତି ପ୍ରକାଶର ପ୍ରତିମା । ପ୍ରତିବେଶୀର ପ୍ରତିବାଦର ପ୍ରତିକାର ଓ ପ୍ରତିବନ୍ଧକ ପ୍ରତିପାଦନ ପାଇଁ ପ୍ରୀତିର ପ୍ରତିନିଧି ପୀର ପ୍ରତିଭୂତ ହେଲେ । ପୂଜାରେ ପ୍ରଧାନ ହେଲା ପାନ, ପକ୍ୱରମ୍ଭା ଓ ପ୍ରଭେଦହୀନ ପ୍ରତିବେଶୀର ପ୍ରୀତିର ପୂର୍ଣ୍ଣ ପ୍ରତ୍ୟୟ ପାଇଁ ପବିତ୍ର କ୍ଷିର୍ଣ୍ଣୀର ପ୍ରଚଳନ । ପ୍ରତି ଘରେ ଏହିପରି ପାନର ପ୍ରତ୍ୟକ୍ଷ ପ୍ରଭାବ ପ୍ରସାରିତ । ପାନର ପର୍ଯ୍ୟାୟ—ପଦ୍ମଭୃଙ୍ଗା ୱାରଙ୍ଗୁଳ, ପାଲୁଅପ୍ରିୟ ଛଞ୍ଚ, ପଶୁଗନ୍ଧ-ପାସୋରା କର୍ପୂରକାନ୍ତି, ପାଗା, ପଦ୍ମୁଃସ୍ୱଲ ମଦେଇ, ପୃଥୁଲ ନରସିଂହପୁରୀ, ପାଥେୟ ପରମହଂସୀ, ଲକ୍ଷ୍ମୀସାଗର—କଲ୍ୟାଣପୁରଅ ମେନକା ପ୍ରଭୃତି ।

ପାନର ପରିପୂରକ Phenol ପାନରେ ପିହିତ କୋକେନ ପରି Arakine ପୂରି ରହିଛି ।

ପାନର ପ୍ରଶସ୍ତିରେ ପବିତ୍ର ପ୍ରଦେଶ ପ୍ଲାବିତ । ପାନବଟା, ପିକଦାନ ପ୍ରତି ଜନେ ପ୍ରତି ଘରେ ପ୍ରତିଷ୍ଠିତ । ପାନ ପ୍ରଚୁର ପରିମାଣରେ ପାଲୁଳ କଲେ ପରିଣାମରେ ପୂର୍ଣ୍ଣ ସ୍ୱାସ୍ଥ୍ୟ ପତନ; ପୁଣି ପାରଦ ପ୍ରଭା ଦଶନ ପନପରିବା ମଧ୍ୟରେ ପ୍ରଶଂସନୀୟ ପାକଲ ଜନ୍ମି ମଞ୍ଜି ପରି ପ୍ରକଟିତ । ପାଟି ଦନ୍ତପଂକ୍ତି ଫୁଲି ପୂଜ ପଡ଼େ, ପଶ୍ୱାସ ହଏ, ପୂତିଗନ୍ଧମୟ ହୁଏ । ପରିଶେଷରେ ପାଷାଣପେଷା ପୋଡ଼ପିଠା ପୋଇଖଡାଖିଆ ପରିପୁଷ୍ଟ ଦାନ୍ତ ପବନରେ ପତାକା ପରି ପୁନଃ ପୁନଃ ପରିଚାଳିତ ହୋଇ ପଟାପଟ ପଡ଼ିଯାଏ, ପାର୍ଶ୍ୱିଭୂଟି ପରି ପୂରିଥିବା ଗାଲ ପାଲୁଅ ହୁଏ । ପାକସ୍ଥଳୀର ପାକରସ ଓ ପରିପାକ ଶକ୍ତିର ପଶ୍ଚତ୍ୱ ପ୍ରାପ୍ତ ହୁଏ । ପେଟକୁ ପାଳୁଅ ପକ୍ଷେ ନାହିଁ କ ପୋଷେ ପିମ୍ପୁଡ଼ିବାସପ୍ରସୂତ ପୂପ ପାୟସ ପେଟରେ ପଶିଲେ ବ ପେଟି ହୋଇ ପାରେ ନାହିଁ । ପୁରୁଷାନୁକ୍ରମେ ପିତ୍ତଜ୍ୱଡ଼ା, ପତନ, ମୂର୍ଚ୍ଛା, ପୋକଶୀ ଦାନ୍ତାଦିର ପ୍ରକୋପ ପ୍ରକାଶ ପାଏ । Parke Devis Company Paste ଅଦି ପ୍ରସ୍ତୁତ କରି ପଇସା ନେଇ ପକ୍କା କରେ ।

ପର ପ୍ରଚୁର ପଇସା ପାଏ । ପାନବାଲା ପାନ ପତର ବଢ଼ା ପକ୍କା ପ୍ରାଚୀର କଲେଣି । ପ୍ରାକୃତିକ ଓଡ଼ିଶା ପ୍ରଦେଶର ପ୍ରାୟ ପନ୍ଦର ଅଣା ପଇସା ପାନ ପିକରେ ପଡ଼ୁଛି । ପାନର ପ୍ରତିବେଶୀ ପିକା କଥା ପଚାରେ କିଏ ? ପୁରୀ ପାରଲା ପ୍ରାନ୍ତପର୍ଯ୍ୟନ୍ତ ପରିବ୍ୟାପ୍ତ ନୂତନ ପ୍ରଦେଶରେ ପାନ-ବରଜୀଙ୍କ ପରତାପ ପରପନ୍ଥି ଦେବ ପରୀ !

ପୁନରପି ପରିମିତ ପାନ ବ୍ୟବହାର କଲେ ପାଟିର ପୂଜାପଢ଼ା, ପଚାଗନ୍ଧ, ପଗ୍ ଧା ଭଲ ହୁଏ । ପ୍ରସାରିତ ପାକସ୍ଥଳୀର ଡସ୍‌ପେପସିଆ ପରୀଭବ ପାଏ । ପିତା କଷା ସ୍ୱାଦ ପରିବର୍ତ୍ତିତ ହୁଏ । ପାକାଗ୍ନି ପ୍ରଚଣ୍ଡ ହୁଏ । ପାନ ପାତିଲେ ପ୍ରବଳ ମୁଣ୍ଡ ବ୍ୟଥା ପଳାଏ । ପୁରୁଣା ଗଳାଘାତ ପାକରସଗ୍ରନ୍ଥି ପରୀସ, ପ୍ଲୁରିସି, ପ୍ରଶ୍ୱାସ ଶ୍ୱାସ କଷ୍ଟ, ପୀଡ଼ିତ ଯକୃତପ୍ରଦାହ ପ୍ରଶମିତ ହୁଏ ।

ପଲ୍ଲଶନଯୁକ୍ତନଶୂଳ, ପିଜାସପୂର୍ଣ୍ଣ କର୍ଣ୍ଣ ପ୍ରଦାହ, ପର୍ଣ୍ଣିରସ ପାତନରେ ପ୍ରହୃତ ହୁଏ । ପାନର ପରିମିତ ବ୍ୟବହାରରେ ପାନର ପୂର୍ଣ୍ଣ ପୀୟୂଷ ପାନ ହେଉ ।

"ତାମ୍ବୂଲଂ କଟୁତିକ୍ତ ମୁଷ୍ଣମଧୁରଂ କଷାୟାନ୍ୱିତଂ
ବାତଘ୍ନଂ କ୍ରିମିନାଶନଂ କଫହରଂ ଦୁର୍ଗନ୍ଧଦୋଷାପହଂ ।
ବକ୍ତ୍ରସ୍ୟାଭରଣଂ ବିଶୁଦ୍ଧକରଣଂ କାମାଗ୍ନିସନ୍ଦୀପନଂ
ତାମ୍ବୂଲସ୍ୟ ସଖେ ତ୍ରୟୋଦଶଗୁଣା ସ୍ୱର୍ଗେଽପ୍ୟମୀ ଦୁର୍ଲଭାଃ ।"

ପରିଶେଷରେ ପାନ ପ୍ରେମୀମାନଙ୍କୁ ପ୍ରାର୍ଥନା ପ୍ରବନ୍ଧର ପ୍ରତିବାଦ ନ କରି ପ୍ରାଣପ୍ରାୟୁଷ୍ଟିଭିରେ ପାନ ପୋଟଳାକୁ ପକେଟରୁ ପଦାକୁ ପକାନ୍ତୁ, ନ ପାରିଲେ ପରିମିତ ପାନଖିଆ parctise କରନ୍ତୁ । ପରେ ପରଜୀବନରେ ପରିତାପ କରିବାକୁ ପଡ଼ିବ—କାରଣ ପାନର ପ୍ରଚଣ୍ଡ ପରିଣାମର proof ପରମାପୁ ପୁତ୍ରବା ପୂର୍ବରୁ ପାକୁଅ ପାଟି ।

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।"

---

# ବାୟୁ ବରୁଣ ବାର୍ତ୍ତା

ବାହନମ୍ ବୃଷଭୋ ଯସ୍ୟ
ବାସୁକୀ କଣ୍ଠଭୂଷଣମ୍
ବାମେ ଶକ୍ତିଧରମ୍ ଦେବମ୍
ବ କାରାୟ ନମୋନମଃ

ବିଶ୍ୱମ୍ଭର, ବାରୁଣୀ-ବିରୁପାକ୍ଷ ! ବରେଇପାଣି ବାଉପାତବ୍ରତ ବିଷକଣ୍ଠ-ବୈଶ୍ୱ-ବିଜୟ-ବାନା-ବିଭର୍ତ୍ତା ବୀରଭୂମି ବାରିପଦାସ୍ଥ ବିଦ୍ୟା-ବାସରରେ, ବାଉଧ୍ୱସୁଧା-ବିମର୍ଦ୍ଦିତା ବୀଣା-ପାଣିଙ୍କ ବାର୍ଷିକ ବରଣ ପାଇଁ ବିପ୍ରବର ବରଣୀୟ ବରବକ୍ତା ବଡ ଦାଣ୍ଡର ବପୁବନ୍ତ ବୟସ୍କ ବଡ ପଣ୍ଡିତ ନୀଳକଣ୍ଠଙ୍କୁ ବଡ ବଗ୍ରତରେ ବର ଅଛୁଁ । ବୃଷଭାଷଣରେ ବିନୀତ ବିଜ୍ଞପ୍ତି, ବାଞ୍ଛାବଣ୍ଠ ବାଞ୍ଛାପୂରଣେ ବିଘ୍ନ ବିନାଶ ପାଉ ।

ବୃଷଭାସନ ! ବାୟୁ-ବରୁଣ-ବାର୍ତ୍ତାର ବିକାଶ ବା ବିଳାସ ଭୂମର ବଗଳାଙ୍କବିନାଶନ, ବିଷକଣ୍ଠେ ଧାରଣ ବା ବ୍ୟୋମକେଶ ବେଶରେ । ବୈଶେଷିକରେ ବାୟୁ ବିଷୟ ବର୍ଣ୍ଣିତ ଅଛି । ବାୟୁର ସପ୍ତ ବେଦ :— ଆବହ, ପ୍ରବହ, ଉଦ୍‌ବହ, ସବହ, ବିବହ, ପରିବହ ଓ ପରାବହ ।

ବାୟୁ ବ୍ୟୋମରେ, ବଳସଦ୍ମରେ, ବନସ୍ଥ, ବସୁଧା, ବେଷ୍ଟୁସ୍ଥା ବା ବିପ୍ର-ଲବ୍ଧା ବାସରେ, ବନ ବିବରରେ, ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପିଛି । ବୀରବର, ବାଳକ, ବାବର, ବିଶାର, ବକ, ବାସୁକୀ, ବରଟା ବାୟୁବିନା ଦଣ୍ଡେ ବଞ୍ଚିବେ ନାହିଁ । ବାୟୁମଣ୍ଡଳରେ ବସୁଧା ବାରିରେ ବିଶାରବତ୍ ବୁଡ଼ିଛି । ବସୁଧାପୃଷ୍ଠରୁ ବାୟୁର ବ୍ୟାପ୍ତି ବହୁଦୂର—ବାରିପଦାରୁ ବୋଷ୍ଟନ୍ ବା ବହୁତ ବେଶି । ବାୟୁ ଗୃପବିଶିଷ୍ଟ । ବିକ୍ଷିପ୍ତ ବାୟୁକଣା ବୋଝବହି ଗୃପା ବିପଦରୁ ବ୍ୟାହତ ଦେଉଛି । ବାୟୁର ଗୃପମାନଯନ୍ତ୍ର ବେରୋମିଟର ବାୟୁର ବିଭିନ୍ନ ବେଶ ବ୍ୟକ୍ତ କରେ । ବିଧୁବ ଉତ୍ତାପ ବା ବରଫାବସ୍ଥାରେ ବାୟୁର ବିଭିନ୍ନ ବର୍ତ୍ତନ ଘଟେ । ବାଣିଜ୍ୟ ବାୟୁ, Belt of calm,

Brave West, ବର୍ଷାବାହୀ ମନ୍‌ସୁନ୍, Bora ଓ Blizzard ଆଦି ବହୁବିଧ ବାୟୁ ବହୁଅଛି । ବାତାବର୍ତ୍ତେ Buys Ballot's law ବା ବିଧାନରେ ବାୟୁ ବହି ବିଧିମତ ବର୍ଷା ବର୍ଷୁଅଛି, ବିଶେଷତଃ ବଡ଼ଦେଉଳ ଦେଶରେ । ବାୟୁ ବେଳେ ବିନୟୀ, ବିନତ । ବେଳେ ବିଦ୍ରୋହୀ । ବିକଟ-ନିନାଦରେ ପ୍ରବଳ ବାତ୍ୟା ବୁହାଇ ବିଭୀଷିକା ସୃଷ୍ଟି କରେ । ବେଳେ ବେଳେ ବାତୁଳ ନ ହୋଇ ବଡ଼ ଧୀର ବିଶ୍ରାନ୍ତ ଓ ବିମୋହନ ବେଶରେ ବିମୁଗ୍ଧ କରାଏ । ବାୟୁ ବାସବନ୍ଧ, ବାର୍ତ୍ତା ଶବ୍ଦବାହୀ । ବ୍ରଡ଼କାଷ୍ଟରେ ବଡ଼ ଚଞ୍ଚଳ ଶବ୍ଦ ବହନ କରେ । ବାୟୁ ବିଦ୍ୟୁତ ବିଳାସରେ ବେତାରରେ ବର୍ଲିନ, ବ୍ରାଜିଲ, ବ୍ରେନ, ବ୍ରିଟେନ, ବେବିଲୋନ, ବମ୍ବେ, ବାଉପଦା ବା ବଗଶାମଲ-ଗଡ଼ର ବ୍ୟବଧାନ ବିଉହ୍ନତଭାବେ ବାଗ୍‌ବିତଣ୍ଡା ବାଣୀ ବା ବକ୍ତୃତା ବରାବର ବହନ କରୁଛି । ବେଲୁନରେ ବିମାନ ବିହାର, ବ୍ୟୋମଯାନରେ ବ୍ରେନ, ବର୍ଲିନ, ବମ୍ବ-ଶକ୍ତିର ବିହାୟସ-ବରାହବରେ ବିପ୍ଳବ ବର୍ଦ୍ଧିତ ହେବାରୁ ବୈବସ୍ୱତପୁର ବିପନ୍ନ ଭାବୁଛି । ବାରିନିଧି ତଳେ ବାୟୁବାହୀ ବେଗ୍ (air bag) ବହି ବିସ୍ମୟକର ବୈଜ୍ଞାନିକ ବ୍ୟାପାରରେ ବ୍ୟାପୃତ ଦେଖି ବାରିଭୂତବାସୀ ବିଣିକ୍‌ସେନ ବିସ୍ମିତ । ବନ୍ଦୁକ ବିସ୍ଫୋଟକ ବାୟୁଦ୍ୱାରା ବିସ୍ତାରିତ ହୁଏ । ବାତକମ୍ପନରେ ବାଦ୍ୟଯନ୍ତ୍ର, ବାତବିବର୍ତ୍ତନରେ ବାତଚକ୍ରଦ୍ୱାରା ବ୍ୟବସାୟ ବାଣିଜ୍ୟ ହୁଏ । ବାୟୁମଣ୍ଡଳ ବ୍ୟାପୀ ଥିବାରୁ ବସୁମାତା ବିପନ୍ନା ନୁହେ । ବାୟୁ ବିବର୍ଣ୍ଣ, ବିସ୍ୱାଦ, ସ୍ପର୍ଶବିହୀନ ବା ବିମିଶ୍ର ବସ୍ତୁ । ବାୟୁ ବିଶ୍ରାମଶୟନରେ ବିବ୍ରତ କର୍ମରେ ବରାବର ବିଦ୍ୟମାନ । ବାୟୁ ବିଭିନ୍ନ ବସ୍ତୁବିଶିଷ୍ଟ । ବିଶ୍ଳେଷଣରେ ବିଶିଷ୍ଟ ବୈଜ୍ଞାନିକ ବ୍ୟାରନ ବୁନ୍‌ସେନ୍ ବିଜ୍ଞପ୍ତି ବାହାର କରି ବିସ୍ମିତ କଲେ, ବାୟୁ ବିନା ବଞ୍ଚିବା ବ୍ୟର୍ଥ ଭାବନା । ବିମୁକ୍ତ, ବିଶୁଦ୍ଧ, ବିସ୍ତୃତ, ବିଲୋଡ଼ିତ ବାୟୁ ବିଶେଷ ଉପକାରୀ, ବ୍ୟାଧି ବିଦୂରିତକାରୀ । ବାୟୁ ସାଧନାରେ ବୈରାଗୀ ବିଜନ ବିପିନରେ ବସୁଧା ତଳେ ବିଶୁଷ୍କ ହୋଇ ବହୁକାଳ ବଞ୍ଚୁଥିଲେ ।

ବିକୃତ ବିଦୂଷିତ ବିଷ ବାୟୁରେ ବସନ୍ତ, ବାତକଫ, ବିଷମ ଜ୍ୱର ବାୟୁଶୂଳ, ବେକଗ୍ରନ୍ଥି-ବ୍ୟଥା, ବ୍ୟତିବ୍ୟସ୍ତକାଶ ଶ୍ୱାସ, ବିବ୍ରତକ ଅମାଶୟ, ବିନାଶୀ ଡ଼ିପଥିରିଆଦି ବ୍ୟାଧି ବିତ୍ପାତ କରେ । ବ୍ୟୋମକେଶବିଜୟୀ ଯକ୍ଷ୍ମା ବ୍ୟାପେ ।

ବାୟୁରେ ବିଭାବହୁବିଭା ବିଚ୍ଛୁରିତ ହେବାରୁ ବିସ୍ତୀର୍ଣ୍ଣ ବ୍ୟୋମ ନୀଳବେଶରେ ବିମୋହିତ କରି ବ୍ୟାସକୁଣ୍ଠ ଦେଖାଏ ।

ବ୍ରହ୍ମା ବିଳବିଲେଇଲେ ବେଦ । ବେଦୋପନିଷାଦାଦି ବିଦନ୍ତି ବିସ୍ତୃତ ବାରିଧିରେ ବାୟୁ ବିଶ୍ୱ-ବ୍ରହ୍ମାଣ୍ଡ ବିଭାସିତ । ବାଇବେଲ୍ ବୋଲନ୍ତି, ବିଭୁବାଣିରେ ବିଭା-ବସୁଧା-ବିଭାବସୁ ବିରାଜିତ, ହବା ବିଭାବରୀ ବିଭକ୍ତ । ବୈଜ୍ଞାନିକ ବୋଲନ୍ତି, ବସୁଧା ବହ୍ନିବିଭ୍ରାଜିତ, ବିଜ୍ୱଳ, ଦ୍ରବୀଭୂତ । ବହୁଦିନ ବିଜୀନ, ବିଦ୍ରୂମବର୍ଣ୍ଣି, ବାରିବ୍ୟାପ୍ତ ରହିଲା । କ୍ରମେ ବସୁନ୍ଧରା— ବିନିର୍ଗତ ତାପ ହେବାରୁ ବିରୂଢ଼ ବନସ୍ପତି, ବିପିନ ବହୁଳ ହେବାରୁ ବାସୋପଯୋଗୀ ହେଲା ।

ବିଭା ବ୍ୟତିରେକେ ବିଷ୍ଣବା ବାତୁଳତା । ବିଳୟ ବିଳମ୍ବ ବିଜ୍ଞାନ-ବିଭାବସୁ, ବିଧୁ ବୃଧାଦି ଗ୍ରହ, ବିମ୍ବାଠ (ଛାୟାପଥ) ନକ୍ଷତ୍ରାଦି ବିଜ୍ୱଳ ରେଡିୟମ, ଅରୋରା ବୋରିଆଲିସ, ବିଲୋଳ ବିଦ୍ୟୁଲ୍ଲତା, ବର୍ତ୍ତିକା, ବିକଟେ ଖଦ୍ୟୋତ ବି ବିଭା-ବିତରଣବିଳାସୀ ବିଭାବନ୍ଦଗଣବରିଷ୍ଠ । ବନ୍ଦବିଭାବସମ୍ପାତରେ ବିବିଧ ବିଚିତ୍ର ବିମ୍ବ ବିମ୍ବିତ ହୁଏ । ବାୟୁସ୍ଫୋଟ, ବିଦ୍ୟୁତ୍ ବିକମ୍ପନରେ ବିମ୍ବାଣୀରେ ବିଶ୍ୱ ବିମୁଗ୍ଧ ।

ବିଶ୍ୱଭାଣ୍ଡର ବିଶ୍ୱାସଘାତକତା ବିଡାଳ ପରି ବୃକ୍ଷ ବିହଙ୍ଗମଙ୍କୁ ବା ବିକଟେ ବସ୍ତୁ ଉଦରସ୍ଥ କରି ବିନ୍ଦୁ-ବିସର୍ଗ ଅବଗତ ବିନା କରିବା. ବ୍ଲାଉଜ, ବ୍ରେସଲେଟ-ବ୍ରୋଚ-ବେଣିନୀ ବିଠପୀର ବ୍ରୀଡ଼ାକର ବିଗୁପ୍ତ ବ୍ୟାପର ବାନ୍ଧକନେୟ ଭ୍ରୂଣ, ବିଷମବ୍ୟାଧି ଛବି. ବିଶ୍ରୁତ ଝାର୍ଣ୍ଣି Rontgen ବିଭାତରେ ବିଘଟଲେ ବିଘଟିତ କରାଇ ବିଭ୍ରମ, ବିଭ୍ରାଠ ବିଭାଜିତ ଓ

ବିରଞ୍ଜିତ କରାଇ ବିଶ୍ରାମ ବର୍ଷୁଛି । ବିଭାବସୁ ବିଦ୍ୟୁଦ୍ଦ୍ୱାର ବିଚିତ୍ର ବର୍ଣ୍ଣବିଳାସରେ ବିଚିତ୍ର ବିକଟ ବ୍ୟାଧିର ବିନାଶ ଘଟାଉଛି । ବିକଟେ ବାଳକ ବଟୁ, ବୃଦ୍ଧ, ବହୁସମ୍ଭବବିଳାସୀ ବ୍ୟସନୀ ବ୍ୟାଧିରେ କ୍ଷୀଣାଙ୍ଗ-ବିକୃତ, ବିଶେଷତଃ ଖାଦ୍ୟାନ୍ୱେଷଣ ବନ୍ଦ କରି ବସିଯାନ୍ତି । ବିଜ୍ଞବାଗ୍ମୀ ପ୍ରତ୍ୟକ୍ଷ ବା ଦୂରବୀକ୍ଷଣ ଯନ୍ତ୍ରରେ ବନ୍ଧୁ ବ୍ୟବଧାନ ବା ବିମାନବାସୀ ବୁଧାଦି ବିଦୃଷ୍ଟ ହୋଇ ବିସ୍ମୟ ବୃଦ୍ଧି କରୁଛନ୍ତି ।

ବିଲୋଳନରେ ବିଳାସ ବିଗ୍ରହରେ ବିଶ୍ୱର ପରିବର୍ତ୍ତିତାପତିତ ବିଚିତ୍ର ବିଭବରେ ବୈଜ୍ଞାନିକ ବିଚିତ୍ରକର୍ମୀ Baptista Porta ଫଟୋଗ୍ରାଫି ବିକାଶ କରି ବିମୁଗ୍ଧ କଲେ ।

ବିରବର୍ଣ୍ଣିନୀ, ବକ୍ଷ-ବସନ-ବିଭଙ୍ଗ, ବିରାଗ, ବଦନବିନୋଦ ଭ୍ରୂବିଳାସରେ ବିମୋହିତଚିତ୍ତ ବିରମାନବ ବିଦ୍ୟୁଲ୍ଲତାନୁଧାବନ ପ୍ରାୟ ବିନପିଆସି ବିତୃଷ୍ଣ ବିଭ୍ରାନ୍ତିରେ ବାସ୍ତବତାହୀନ ମରୀଚିକାବରଣରେ ବ୍ୟଗ୍ର ଧାବନ କରି ବିଫଳପ୍ରୟାସ ହୋଇ ବିଷର୍ଣ୍ଣ ବଦନରେ ବସେ ।

ବିବିକ୍ତଚିତ୍ତରେ ବିଷମ ବ୍ୟାଖ୍ୟା ଭାବେ ନାହିଁ । ବୈବସ୍ୱତମନୁ ବରୁଣଙ୍କ ବିବୃତ ବଳଛନ୍ତି । ବନବେଷ୍ଟିତ ବସୁଧା ବାରିରାଶିରେ ବିଲୋଳିତ ବାରିଜବତ୍ । ବରୁଣାଳୟରେ ବିଣିକସେନ ବାରିନ୍ଧି ବିତାନରେ ବାସୁକି ବର୍ତ୍ତମାନରେ ବାତୁଳିସହ ବାହୁବେଷ୍ଟନରେ ବିଲମ୍ବିବିଶ୍ରାମବ୍ୟସ୍ତ । ବସ୍ତୁତଃ ବନ, ବାରିଧିରେ ବିକର୍ତ୍ତନ ବିଚ୍ଛୁରିତ ବିଭାବିସମ୍ପାତରେ ବାଷ୍ପ ହୋଇ ବାୟୁସହ ଗମନ କରି, ବିନଦନନାଦ କରି ବଜ୍ରାସନ ଗୌରିଶଙ୍କରରେ ବସେ । ବାୟୁରେ ବିନ୍ଦୁ ବିନ୍ଦୁ ହୋଇ କୁଜ୍ଝଟିକା ବରଫଶିଳା ବା ବୃହତ୍ ହିମଗିରିରେ ବିରାଜିତ ହୁଏ । ବରଫ ବେଷ୍ଟନୀରେ ବସି ବିଗଳିତ ହୋଇ ବୃନ୍ଦାବନବିହାରିଣୀ ଗଙ୍ଗା ଯମୁନା ବେଶରେ ବଦ୍ରିନାଥ ବିଲୋକନରେ ବିଦ୍ଧବାଟେ ବିବିକ୍ତ କରାଏ ।

ବିଦେଶରେ ବୃହତ୍ "ଆଇସ୍‌ବର୍ଗ" ରୁପେ ବାରଧି ବଷରେ ବହୁ ବିଶାଳ "Bank of Newfoundland" ବନାଇ ବିଶାର ବିନାସର ବସୁଧାଶ୍ରେଷ୍ଠ ବାଣିଜ୍ୟ ବଅଭ କରନ୍ତୁ ।

ବୃଷ୍ଟିରେ ବାରଧାରା ବାରବାହକା ନଦୀରେ ବଙ୍ଗୋପସାଗରାଦରେ ବିଲୀନ । ବିନ୍ଧ୍ୟାଚଳ, ଶବର୍ଦ୍ଧମାନ ଶେନ ବାରଝରରେ ବଡ଼ ବଡ଼ ବ୍ୟାଧି ବିଲୁପ୍ତ ଦେଉଅଛନ୍ତୁ ।

ବୈଦେହୀ କୁଣ୍ଡ (ସୀତା କୁଣ୍ଡ), ବିରାଟ ହମାନ ମେସ୍‌କୋଟିନ ବଡ଼-ଠାକୁରଙ୍କ ବାଟସ୍ଥ ଅର୍ଦ୍ଧ ଓ ବରକତାର ବିଷମ ଉଷ୍ଣବାର ବରାବର ବହୁ ବିଷମ ବ୍ୟାଧିବ୍ୟସ୍ତଙ୍କୁ ବରାଭୟ ଦେଉଅଛନ୍ତି । ଏବଂବିଧରେ ବନ ବନ୍ଧୁ ବେଶରେ ବଳସନ୍ଧ, ବସୁଧା ଓ ବିହାୟସରେ ବିହାର ବିବ୍ରତ । ବନ ବେନବସ୍ତୁ $H_2O$. ବିନଯୋଗରେ ବିଗ୍ରହବାନ୍ । ବନ୍ଧୁ ପୂର୍ବେ ବକରବିଖ୍ୟାତ ଭୂରଷ୍ଟରେ ବ୍ରିଟିଶ ବିଷପ୍ ବିଶ୍ୱ-ବିଦ୍ୟାଳୟରେ ବିଦ୍ୟାଦାନ କରୁଥିଲେ ।

ବହୁରେ ବନୋପୃତ୍ତର ବୈଜ୍ଞାନିକ ବିଜ୍ଞପ୍ତି $H_2O$ ବିଖ୍ୟାତ କଲେ । ସେନ୍ତେବେଳେ ବାଦସାହ ବେନ (୬ଷ୍ଠ) ଅବଦୁଲ ହମିଦ ବେହରଣରେ ବିରାଜିତ ଥିଲେ । ବିଜ୍ଞନବିରହିତ ବ୍ୟକ୍ତି ବୁଝିଲେ "$H_2$" ବାଦ୍‌ସାହା ୬ଷ୍ଠ ହାମିଦ— "O" ବୁଝିଲେ ବେକୁଫ୍. ବେକାର. ବେକାମିକା, ବେକରାମଡଅ ବା ବେଇଲକାଦାର, ବ୍ୟର୍ଥ ବୁଝିଲେ, ଶୀରବର ବାଦସାହା ଅବଦୁଲ ହାମିଦ ବେକୁଫ୍, ବେକାର, ବେକାମିକା ବେକର୍‌ମଡଅ ବେଇଲକାଦାର । ତାଙ୍କୁ ବେକସୁର ବସିବା ଦେଶରୁ ବାହାର କର । ବଡ଼ ବଡ଼ ବିଶ୍ୱରବାଗୀଶ ବିବେଚନା କଲେ ବେଇମାନ, ବେଇଲକାଦାର, ବେନସାଫି, ବେବୁଧିଅ, ବିଦ୍ୟାଳୟରେ ବିପ୍ଳବବାଦ ବୁଣୁଛନ୍ତି—ବେକବୁଲ ବସିବା ସ୍ଥାନରୁ ବାହାର କର—ବାଢ଼ିଅ ପୁଲିସଙ୍କୁ ବଢାଅ ବେକରେ ବାଡ଼ି ବସାନ୍ତୁ । ବନର ଏ ବ୍ୟର୍ଥବାଦ । ବନ ବିନା କେହି ବର୍ତ୍ତିବେ ନାହିଁ, ବ୍ୟବସାୟ ବାଣିଜ୍ୟ,

ବର୍ଣବିଲ, ବିଳାସବ୍ୟସନ ବ୍ୟର୍ଥ ହେବ । ବଡ଼ବାନଳ ଜଳବ । ବିଶୁଦ୍ଧ ବନରେ ବିନିର୍ମଳ ବପୁବନ୍ତ ଅସୁବନ୍ତ ହୋଇ ବିଜୟବୈଜୟନ୍ତ ଉଡ଼ାଇବ । ବିଷାକ୍ତ ବନରେ ବିସୂଚିକା, ବସନ୍ତ, ବିଣୀ ଅମାଶୟ, ବିବର୍ଣ୍ଣିକାସ୍ୱ କ୍ରିମି, ବିକୃତ ଗଳଗଣ୍ଡ, ବିକାର-ବାଧା ଆନ୍ତ୍ରିକ ଜ୍ୱର ହୁ'ୀ । ବାୟୁ-ବରୁଣ-ବିଭୁ ଓ ବିଦ୍ୟୁତର ବିନିଯୋଗରେ ବ୍ୟାଧିବାଧା ହୋଇ ମଧ୍ୟ ବିଶିଷ୍ଟ ବିଧାନରେ ବହୁବିଧ ରୋଗ-ଜୀବାଣୁ ବିନଷ୍ଟ ହୁଅନ୍ତ । ବିବୃଦ୍ଧ ବୋଲେ, ବାୟୁ-ବରୁଣ ବିକର୍ତ୍ତନ ବେକାଇଦାରେ ବାରମାସିଆ ବେଠିଆ ପରି ବେଗାରି କରି ଥିଲେ । ବର୍ତ୍ତମାନ ବାୟୁ-ବରୁଣ-ବିଭୁ ବିଦ୍ୟୁତ୍ ବିନିଯୋଗରେ ବିରାଟ ବିକଟ ବ୍ୟାପାର ଘଟାଉଛନ୍ତି । ବିଦ୍ୟାଳୟରେ ବୈଶ୍ୱ ବିନାଶନରେ ବ୍ରିଟିଶ ବିପଦଧ୍ୱଂସୀ ବ୍ୟୋମଯାନରେ ବିପଦ୍ ପ୍ରତିକାର ପାଇଁ ବ୍ୟସ୍ତ । ବୋଆନିଆ ବାଲ୍‌ଟିକ, ବ୍ରିଟିଶ ଓ ଉତ୍ତର ବାରିଧିରେ ବାରିନିଧି ତଳେ ବିସ୍ଫୋରଣରେ ବାର-ବୈଶ୍ୱ-ବ୍ୟସ୍ତ ବାଲ୍‌ଟିକ ଓ ଉତ୍ତର ବାରିଧି ବିପ୍ଳାବିତ ସ୍ଥଳରେ ବୈଶ୍ୱ-ଭ୍ରାତବିରହିତ ପାଇଁ ବସୁଧା ବିଦାରି ବିବର ବାସର-ବ୍ୟବସ୍ଥା ଓ ବନ୍ଧୁକ ବୋମା ବିଭ୍ରାଟରେ ବିଷବାଷ୍ପ ବିରୋଧ ବ୍ୟବସ୍ଥାର ବ୍ୟାପାର ଶୁଣୁଛୁ । ବିଭୋ ! ବୈରି ବିନାଶନ ହେଉ—ବିଜୟବୈଜୟନ୍ତ ଉଡ଼ୁ । ବାୟୁ ବରୁଣ ବିଭୁର ବିଶୁଦ୍ଧ ବ୍ୟବହାରରେ ବିଶ୍ୱ ବିଶ୍ରାନ୍ତି, ବିରାମ ଓ ଚିରବିରାଜିତ ଶାନ୍ତି ପାଉ ।

ବାୟୁବରୁଣ ବିଷୟ ବର୍ଣ୍ଣନା ବିଶେଷଭାବରେ ବିବୁଧମାନଙ୍କ ବିଶ୍ୱରକୁ ଅସୁ । ବିଶେଷ ବେଳ ବଳଗଲଣି, ବିଦାୟ ।

---

# ମକାର ପଞ୍ଚକମ୍

(ମମମାମୁମୈ)

ମହାଦେବ ମହାତ୍ମାନଂ ମହାଧ୍ୟାନପରାୟଣଂ
ମହାପାପହରଂ ଦେବଂ ମକାରାୟ ନମୋନମଃ ।

**ମ**ହତୋମହୀୟାନ୍ ମହିମାମୟ ମୁକୁଟମଣ୍ଡିତ ମରୁତ୍‌ମାର୍ଗ-ମହାରଥ ସାମରିକ ମହୀମୁଖର ମାରକ ମେଘମାନ (ବିମାନ) ଚମୂପତି, ମୁଖ୍ୟ ମହାବୀର, ମେଘାସନ ମହୀଧରମୂର୍ଦ୍ଧମସୃଣଧ୍ୱଜମଦମର୍ଦ୍ଦୀ ମିହିରକୁଳମସୃଣ ମହାବାହୁ ମହୀପତି, ମୟୂରଭଞ୍ଜମାନବମଣ୍ଡଳମଙ୍ଗଳମାନସ ମତିମାନ୍ ଫ୍ଲାଇଟ ଲେଫଟ୍‌ନେଣ୍ଟ ମହାରାଜା ଶ୍ରୀମନ୍ ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜ ଦେବ ମହାନ୍ ନାଇଟ୍ କମେଣ୍ଡର ଅଫ୍ ଦ ମୋଷ୍ଟ ଏମିନେଣ୍ଟ ଅର୍ଡାର ଅଫ୍ ଦ ଇଣ୍ଡିୟାନ ଏମ୍ପାୟାରଙ୍କ ମଙ୍ଗଳମୟ ମହୀମଣ୍ଡଳ-ମାଲିକତ୍ୱ ମୁଣ୍ଡାଇବା ମୁହୂର୍ତ୍ତର ସ୍ମାରକରେ ମୋଦମତ୍ତ ସାହିତ୍ୟ-ସମାଜ-ମଣ୍ଡପର ମନସ୍ୱୀ, ମେହନୀ ମଧ୍ୟସ୍ଥ ମନ୍ଦମନ୍ଦନମୂର୍ତ୍ତି, ମର୍ଦ୍ଦିତତାମ୍ରପଟ୍ଟା-ମନ୍ଦର-ମୁଦ୍ରା-ମୋହର-ମୀମାଂସକ, ମର୍ମୋଦ୍‌ଘାଟକ, ମନୁକାଳତତ୍ତ୍ୱ-ପାରଙ୍ଗମାଚାର୍ଯ୍ୟ-ପରମାନନ୍ଦ ମଙ୍ଗଳା-ଚରଣମନ୍ତ୍ରେ ମୁକ୍ତକଣ୍ଠରେ ମେଘଜ୍ୟୋତିରେ ମେଘମଲ୍ଲାର ମୂର୍ଚ୍ଛନାରେ ମହାନନ୍ଦେ ମହିମାମୟଙ୍କୁ ମହୀପାଳଙ୍କ ମଙ୍ଗଳ ମନାସିଲେ ।

ମାଙ୍ଗଳିକ କର୍ମର ମେହନ୍ତ ମେଲଣି ମୁଦ୍ରାମାନରେ ମୁଣ୍ଡମୋଡ଼ ମୁର୍ଚ୍ଛିଲିକା ମାଗୁଛି । ମୋର ମହଜୁଡ ମନଗଢ଼ା 'କଚଟତପ'ରେ ମନ ନ ମାନିଲେ ସମାଜ ମଣ୍ଡଳ ମୋହନମୋଦକ ମଦ୍ୟ-ମତ୍ସ୍ୟ-ମାଂସ-ମୁଦ୍ରା-ମୈଥୁନ ବା 'ମମମାମୁମୈ'ରେ ମଧ ମଙ୍ଗାଇବେ । ମନୋମିତ ନ ହେଲେ ମଜଲିସରେ ମଜୁରିଲୁ ମହଜୁଡ ।

ମଦ୍ୟ—

ମଦନକଣ୍ଟକ ମାଧ୍ୱିକ, ମୈରେୟ, ମାଳିକା, ମାଧବୀ, ମଧୁ, ମଦନୀ, ମନୋଜ୍ଞ, ମୋଦନୀ, ମଧୂଳିକା, ମହାନନ୍ଦା, ମଦିରା, ମଦିଷ୍ଠା

ମୂର୍ତ୍ତିରେ ମଦାଳସା-ମନମୋହନରେ ମଉଜ ମହୋତ୍ସବରେ ମଦନ-ମନ୍ମଥ-ମାର ମନ୍ଦମିଳନରେ ମହଜୁଡ଼ ।

ମନୁକାଳରୁ ମହାପ୍ରାଚୀର ମହୋଦଧି ମେଦନୀ ମାଡ଼ୁଛି । ମାନ୍ଧ ମଦର ମେଦନୀକୁ ମେରୁରୁ ମେରୁକୁ ମତାଉଛି । ମହାଭାରତରେ ମୁନି ଶୁକ୍ରାଚାର୍ଯ୍ୟ ମୁଧୁଲିକାମିଶ୍ରିତ ମୃତ କଚକୁ ମନ ମଉଜରେ ମରମେ ମରମେ ମିଶାଇ ମୃତସଞ୍ଜୀବନୀ ମନ୍ତ୍ରରେ ମରଣରୁ ମୁକ୍ତକରି ମଙ୍ଗିଲେ—ମହାନନ୍ଦା-ପାନ ମହାପାପ, ମଧ ମଦ୍ୟମଦେୟମପେୟମଗ୍ରାହ୍ୟଂ । ମହାଗ୍ରନ୍ଥ ରାମାୟଣରେ ମନ୍ଦ ରାବଣ ମନ୍ଦିରରେ ମାଧ୍ୱିକ ମଦ ମହକୁଛି । ମହାଭାରତରେ ମୌଷଲୀ ପର୍ବରେ ମାଧବ ମଦ୍ୟପୂର୍ଣ୍ଣ ମୃତ୍ପାତ୍ର ମୁଖରେ ମଣ୍ଡ । ମାର୍କଣ୍ଡେୟ ପୁରାଣରେ ମହିଷମର୍ଦ୍ଦିନୀ ମହିଷାସୁର ମାରଣରେ ମଦମସ୍ତା ମତ୍ତା ଥିଲେ । ମାଘ (କାବ୍ୟ) ମଧ ମଦ୍ୟ-ମହିମା-ମିଶ୍ରିତ ।

ମିଶରରେ ମଦ ନାମ 'ଜଥାମ' । ମାଜୀ ରୋମ ସମ୍ରାଟ ମହାଯାନ ଜୁଲିୟସ ସିଜର ମଦରେ (ବିୟର) ମହାଯାଣୀ ମର୍ମମନ୍ତ୍ରୀ 'ମିଲ୍ଟାରାମେନ'ଙ୍କୁ ମତାଇ ଥିଲେ । ମହାସୋପାନର (continental shelf) ମହା ମଣ୍ଡନ ମେରୁଭବନ (Meridian) ମଧ୍ୟସ୍ଥ ଲଣ୍ଡନ, ମହାପ୍ରାଚୀରସ୍ଥ (ଉତ୍ତର ସାଗର) ମାଲଭୂମିର ମହ୍ୟଡଗରବେଙ୍କ, ମେଷ-ମୁଦ୍ରା, ମଥାମଣି ମାନଚେଷ୍ଟାର ମଣ୍ଡିତ ମହାଦ୍ୱୀପସୀ ମହା (ବ୍ରିଟିଶ ଦ୍ୱୀପପୁଞ୍ଜ), ମାଲମାଲ ପ୍ରବାଳ ମହାଧର, ମିଲଡୁରା (ଉଦ୍ୟାନ), ମାର୍ଗନ (ଯୂନା ପାହାଡ଼), ମରୁରେ ମରୁ, ମେଲବୋର୍ଣ୍ଣମଣ୍ଡିତ ମାଂସଳ ମେରିନମେଷମୁଖରିତ ମେଦନୀ (ଅଷ୍ଟ୍ରେଲିଆ), ମେଦନୀମେଳକ ମିଶରର ସୁଏଜ ମିଳିତ ମୁକ୍ତିକାମୀ ମହାଦେଶ (ଅଫ୍ରିକା), ମହାବତାସ (Hurrican) ମଥିତ ମଣ୍ଟେରିଲ (ଶିଳ୍ପକେନ୍ଦ୍ର), ମେଡ଼ିସିନାଲ ହ୍ୟାଟ, ମେକ୍ସିକୋ-ମିସିସିପି ମିଶୋରୀ Mosquito coast, ମାନାଗୁଆ-ମୁଣ୍ଡିତ ମେଦନୀ (ଅମେରିକା), ମୁମୂର୍ଷୁ ମସ୍କୋମସ୍ତିଷ୍କମାଟି (ରୁଷିଆ), ମାଙ୍କା-ରାଇଲ୍ ମହ୍ୟାସୀ ମହଡାମୁର୍ଦ୍ଧା ଜାପାନର ମୁଣ୍ଡ ମାଡ଼, ମାନସରୋବର, ମେଟ୍ରୁର ବନ୍ଧ ମାନ୍ଦ୍ରାଜ ମତାଇ ମାଲବାରକୋଷ୍ଟରେ ମଦ ମହାସାଗରେ-ମିଶିଛି ।

ମଦ ମହାନନ୍ଦ, ମଧୁରପାନସ, ମିଷ୍ଟଦ୍ରାକ୍ଷ, ମନମୋହନ ସୋମରସ, ମାଧୁକ, ମୂତ୍ରବେଗମାରକ ଖର୍ଜୁର, ମଦକାଣ୍ଡ ତାଲ, ମହାରସ ମୃଦ୍ଭୀ-ପୁଷ୍ପ (ଅଙ୍ଗୁ), ମାଧ୍ୱୀକ, ମୈରେୟ, ମିଷ୍ଟ ଗୌଡ଼ 'ରମ୍', ମୃଦ୍ଭୀଫଲ୍ୟା (କଦଳୀ) ରୂପେ ମନୋଜ୍ଞ ହୋଇଛି । ମୃତସଞ୍ଜୀବନୀ ସୁଧା ସେଥି ମେଷଶୃଙ୍ଗୀ ମରଣ୍ଟଦ ମୃଣ୍ମୟ ମୋଛକା ମସୂର କ୍ଷେପିରେ ମନ୍ଦାଗ୍ନିରେ ମଗ୍ନଯାଏ । Modern ମଦର Material ସମାନ, ମାତ୍ର Method of making ମେଲା ମେଳା ।

ମହାତ୍ମା ପଲ, ମନସ୍ୱୀ ହୋମର ଓ ମାର୍ସାଲ ମଦର ମହୋଲ୍ଲଖିତା ମାନିଛନ୍ତି । ମଧୁର ଦ୍ରାକ୍ଷା Mustରୁ ସ୍ୟାମ୍ପେନାଦ ମଦଗ୍ର ମିଳେ । ମଧୁମୟ ହେମନ୍ତକ ମେଲରେ ମହାପର୍ବରେ ମଧ୍ୟ ମଦର ଚଳନ ମୁସା ମାନିଲେ । ମାଦକଦ୍ରବ୍ୟ ଧର୍ମ ମାତ୍ରକେ ମନା । ମାତ୍ର ମଦରେ (ଖାମାରରେ) ମନମଉଜଥି ମଜାଲୁସିଥି ଡେମୁରବେଗ ମନମୋହନୀ ବେଗମ ମେଲରେ ମେଲାପି କ୍ଲେଡ୍ଜଙ୍କ ମାନରକ୍ଷାରେ ମଶଗୁଲ ।

Modern ମଦର ନାମ:—ମହାମହିମ Willium IV, Melrose orange, Martini, Manhatan. Munich Beer, Martells Brandy, Manola, Muskhan, Maraschino, Manzanilla ଆଦ ମନୋଜ୍ଞ ମଧୁର ନାମରେ ମହାଦେବ ମଦନମୋହନ ମଧ୍ୟ ମଉଁକୁ ମେଲ୍ଥିସି ମିଳନ ମନ୍ଦରରେ ମଗ୍ନ ମନାସିବେ ।

ମଧୁଲିକାର ମଧୁର ମାଧ୍ୟାକର୍ଷଣରେ ମନୋହର ମନତୋଷରେ ମୋହିନୀମନ୍ଦରେ ମାର୍ତ୍ତଣ୍ଡତେଜୀ ମହାପୁରୁଷ, ମହାମହୋପାଧ୍ୟାୟ, ମହାମୂଢ଼ ମଧ୍ୟ ମଦ ମଣ୍ଡରେ ମହି ଦାଣ୍ଡରେ ମିମିକ୍ଷାରେ ମିମତ୍ସୁ ମଙ୍କମାନ ହୋଇ ମନମହଉମାର ମାଇଗୁଲଥି ମାତରପୁରୁଷବତ୍ ମନ୍ଦନାଦରେ ମୁଖେ ମଣ୍ଡନ୍ତି:—"ମାମାଂସମନ୍ତ୍ରନେମନ୍ଦମାମଦେୟମାତମୈଥୁନେ" ।

ମାନବ ମହାମୂର୍ତ୍ତିରେ ମନମୋହନୀ ମହିଳା ମନ୍ଦିରରେ ମଠରେ ମାଇଁ-ମାମୁ-ମା ମେଳରେ ଧର୍ମାଧର୍ମମତାମତରେ ମାନମହତମାର ମୁଣ୍ଡମାଡ ମଦ୍ୟମାଂସମତ୍ସ୍ୟମୁଦ୍ରାମୈଥୁନରେ ମତ୍ତ । ମଦନମନ୍ଦିରମଞ୍ଜୁଳା ମଞ୍ଜୁକେଶା ମୃଦୁଭାଷିଣୀ ମଞ୍ଜିଷ୍ଠାମାଖି ମଦଗ୍ରମତ୍ତା ମଦନମଞ୍ଜୁସ୍ୱମୂର୍ତ୍ତିରେ ମହାମାନବ ମେଳରେ ମାନମଞ୍ଜୁଷା ମାଡ଼ ମାରଣା ମତ୍କୁଣ (ମହୁଷ) ମିଠା ମଢ଼ୁଅ-କ୍ଷାଙ୍କୁଳ ମୋଡିମାଡ଼ି ମୃତ୍ୟୁଫଳ (କଦଳୀ) ଖାଇ ମୃତ୍ୟୁବୀଜ (ବାଉଁଶ) ମୁଠାଇ ମତ୍କୁଣ (ନଡିଆ) ଓ ମୃତ୍ୟୁସୂତ୍ରଃ ମୁଖରେ ମଡ଼ାଚଣ୍ଡିଆ ସମ ମଶାଣିରେ ମାନମହତାର୍ଥ ମିଳେଇ ମହୁଲ ମଦରେ ମନ ମନାଉଛନ୍ତି । ମଧୁମତ୍ତ ମନମଉଜରେ ମଧୁକଣ୍ଠମିଠା ମୁଖରିତ କରେ । —

ମଧୁରୟା ମଧୁବୋଧିତମାଧବୀମଧୁସମୃଦ୍ଧିସମେଧିତମେଧୟା
ମଧୁକରାଙ୍ଗନୟା ମୁହୁରୁନ୍ମଦଧ୍ୱନିଭୃତା ନିଭୃତାକ୍ଷରମୁଜ୍ଜଗେ ।

ମତ୍କୁଣାର (ସିଦ୍ଧି) ମାତାଲ ସମ ମତ୍କୁଣ (ଉକୁଣି) ମୁଣ୍ଡରେ ମତ୍କୁଣ (ମାଙ୍କୁନା) ମତ୍କୁଣୀ (ଅଜାଗଲସ୍ତନା) ମଣ୍ଡୁକପ୍ଳୁତନ୍ୟାୟ ମୁଣ୍ଡବେମାରରେ Monoplaneରେ ମସ୍ତିମଣ୍ଡଳମନ୍ଥି ମଣ୍ଡୋଦକ ପିଇ ମସ୍ତମାନବ ମୁଣ୍ଡ ମୁଣ୍ଡପାଣି-ମୁଖଜିହ୍ୱା-ମାଂସ ମନ୍ଦ କମ୍ପନରେ ମର୍ମାହତ । ମସ୍ତିଷ୍କର ମତ୍ତତା, ମୀମାଂସାହୀନତା, ସ୍ମୃତିହ୍ରାସ, ସ୍ନାୟୁମଣ୍ଡଳମତ୍ତତା, Mania, ମନ୍ଦାଗ୍ନି, ମତିଚ୍ଛନ୍ନ, ମନ୍ଦନିଦ୍ରା (Insomnia), ମେଲ୍ ପାକସ୍ଥଳୀ, ମୋଟା ଯକୃତ୍, ମୋଟା ଧମନୀ, ମସ୍ତ ମୂତ୍ରଗ୍ରନ୍ଥି, Myocardial Degeneration, ମାରାତ୍ମକ ମୃତ୍ୟୁତୂର୍ଯ୍ୟ (ରୋଗ) ମହାରୋଗାଦିରେ ମରଣ ହୁଏ ।

ମତ୍ତମାତଙ୍ଗସମ ମହାବଳୀ ମହାମାନବ ମଦଗ୍ରମଣ୍ଡରେ ମୃଣାଳକୃଶ ବା ମେଦମସ୍ତ ହୋଇ ମୋହନକାନ୍ତି ମାରି ମୃତ୍ୟୁଭୃତ୍ୟରେ ମଡ଼ା ହୁଏ । ମାତ୍ର Medicinal ମାତ୍ରାରେ Moderationରେ ମୃତସଞ୍ଜୀବନୀ ମନ୍ତ୍ର ମଡ଼ାମଙ୍କୁରିତ ମୃତ୍ୟୁଞ୍ଜୟ ହୋଇ ମତ୍ତମାତଙ୍ଗମତ ମୃତ୍ୟୁବୀଜ-ମୃତ୍ୟୁପୁଷ୍ପମୂଳ ମନ୍ତ୍ରେ । ଏହା ମଦମିତାଗ୍ରହର ମୂର୍ତ୍ତିମନ୍ତ Manifestation.

**ମତ୍ସ୍ୟ ମାଂସ—**

ମତ୍ସ୍ୟ ମାଂସ ମଦର ମାରଫତ୍‌ଦାର୍ । ମୀନ ମୂକ ମତ୍ସ୍ୟ-ତିମି-ତିମିଙ୍ଗିଳଙ୍କୁ ମାଗୁର ମହୁରାଳଙ୍କ ମେଳା ମେଳା । ମତ୍ସ୍ୟଦେଶରେ ମହାମାନବ ମତ୍ସ୍ୟାବତାରରେ ମେଦିନୀ ମୋକ୍ଷ କଲେ । ମାର୍କିନର ମହିଳାସାହିତ୍ୟିକ ମିଲେମେଷ୍ଟର ମାତୃଭୂମି ମେଇନ ମଧ୍ୟସ୍ଥିତ ମାସାଚୁମେଟାସ୍ ମିଷ୍ଟସାର୍ଡିନ (ଛଂଡ଼) ମାଛପାଇଁ ମେଦିନୀରେ ମୁଣ୍ଡ ଟେକିଛି । ମାଂସ ମଧ ରାମାୟଣ ମହାଭାରତ ସମୟରୁ ମାନସ ମୋହନରେ ମଦର ମହାନ ମିତ୍ର । ମତ୍ସ୍ୟମାଂସକାମୀ ମତ୍ସ୍ୟମାଂସବର୍ଜୀମାନେ ମନେ ମନେ ମାନରେ ମରାମର—ମାଂସ ମନ ମାନ ମେଣ୍ଟୁ ନାହିଁ ।

ମହାକାବ୍ୟ ମତ୍ସ୍ୟମାଂସବର୍ଜୀ ମତ୍ତମାତଙ୍ଗ ମହାରଣ୍ୟ ମୃଗତୁରଙ୍ଗମ ମାରଣା ଗରଲ ମୂଣିପେଠା କାଙ୍ଗାରୁ—ମିଲଜୁରର ମାନ୍ୟାକାବ୍ୟ ପ୍ଲାଟିପସ୍ ମାରଣା ଗରଲ ମହିଷାଦ, ମାଂସାଶୀ ମୃଗେନ୍ଦ୍ର ମାଂସରଙ୍କା ମହାବଳ ଓ ମାଛ-ରଙ୍କା, ମାତ୍ସର୍ଯ୍ୟମଣ୍ଡଳରେ ମାନଦଣ୍ଡରେ ସମାନ ।

ମଠମନ୍ଦିରମଣ୍ଡିତ ମୁକ୍ତିମଣ୍ଡପୀ ଦଶାଶ୍ୱମେଧଘାଟମଣ୍ଡୀ ମତ୍ସ୍ୟକେଶରୀଙ୍କ ମତ୍ସ୍ୟଦେଶୀ ମତ୍ସ୍ୟମାଂସାଶୀ; ମାତ୍ର ମର୍ହଟା, ମରୁବାସୀ ମାରୁଆଡିମାନେ ମତ୍ସ୍ୟ ମାଂସ ନାମେ ମୂର୍ଚ୍ଛିତ । ମାରୁଆଡ଼ି ସମ ମତ୍ସ୍ୟଦେଶୀ ସମଶକ୍ତିମାନ କି ?

ମେଣ୍ଢା ମେଣ୍ଢା ମାଂସ ମାଠିଲେ (ଭକ୍ଷିଲେ) ମନକଷ୍ଟିଆ Rheumatism, gout ଦମାଦମ ବେଦମ ମୃତ୍ୟୁମନ୍ଦିରଗାମୀ ହୃଦ୍‌ରୋଗ ଧମନୀର ମୃତ୍ୟୁଭୃତ୍ୟ, ମୋଟା ମେଟେ ମୂତ୍ରଗ୍ରନ୍ଥିରେ ଏବଂ ମଢ଼ାମାଂସରୁ ଟୋମେନ ପଏଜ୍‌ନଙ୍ଗ୍‌ରେ ମରଣ ହୁଏ । ମସ୍ତ Tape worm, ମାରକ Anthrax ଆଦି ମୁସ୍ତେଜ ହୋଇ ମନୁଷ୍ୟଙ୍କୁ ମାରନ୍ତି ।

**ମୁଦ୍ରା—**

ମୁଦ୍ରାର୍ଥମନର୍ଥ । ମୁଦ୍ରାମାନେ ମୋହର, ତାମ୍ର, ରୌପ୍ୟ-ମୁଦ୍ରା, ନାମାଙ୍କିତ ମୁଦ୍ର ମୁଦ୍ରାଲିପି । ମାତ୍ସ୍ୟାତନ୍ତ୍ରମତେ ମୁଦ୍ରାଭଙ୍ଗୀ । ମହାପ୍ରାଚୀର (ସମୁଦ୍ର) ମନ୍ଦରମନ୍ଥନସମ୍ଭୂତା ମା ମହଶ୍ରୀ ମେଲରେ ରହି ମଧ୍ୟ ମନୋଜ୍ଞର ମୁଦ୍ରାଭାବ ମେଣ୍ଟାଇ ନାହିଁ । ମୁଦ୍ରାରେ ମାନବ ମୁଖିଆ—ମୁଦ୍ରାବିନା ମୁଥାମାଡ଼ ।

ମଜୁରିଆ, ମୁହୁରୁଲି, ମୁହାଲ୍ଲ, ମୁହେଇ, ମୁକ୍ତିଭାବନ୍ତୀମାନଙ୍କର, ମୁକ୍ତିମଣ୍ଡପରେ ମୁକାବିଲା ବନ୍ଦୋବସ୍ତରେ ମୁକ୍ତିଅଧରେ ମୀମାଂସାରେ ମେହେନାର ମହଗନ୍ଧରେ ମୁଦ୍ରାର ଦରକାର । ମର୍ମନ୍ତୁଦ ମୁଦ୍ରାଭାବେ ମହରଙ୍ଗା ନ ମିଳଲେ ମେଣ୍ଢାମିଙ୍ଗା ମାନ ରଖେ । ଏ ମହାଯୁଦ୍ଧ ମୂଳେ ମଧ୍ୟାନ୍ତ୍ରେ ମୁଦ୍ରା । ମ-ପଞ୍ଚକର ମୁଦ୍ରା—ମଜାର ଚଣକ, ମୁଢ଼ି, ମଠିକା ଚୂଡ଼ା, ମଜେଦାର ଗୋଧୂମ— ମନେହେଲେ ମୁଖଲକ୍ଷ୍ମା ଯାଇ ମୁଖାଲଲ ହୁଏ । ମୁଦ୍ରାପାଇଁ ମନୁଷ୍ୟ ମୁଖବ୍ୟଙ୍ଗରେ ମୁଖାଗ୍ନ୍ ମୁଖଲଙ୍ଗଳ ହୁଏ ।

## ମୈଥୁନ—

ମୈଥୁନ ମ-ପଞ୍ଚକର ମେଳକ । ମରଦ ମାଇକନା ମେଳରେ ମରଦ ମେକାପ । ମହିଳା ମଧୁର ମିଳନରେ ମରଦ ମାଇଗୁଲିଆ । ମୈଥୁନ ମିଡାଗ୍ରର ଓ ମମତାମାରକ ନମ୍ବୃମରେ ମାନବକୁ ମରଣରୁ ମୁକ୍ତ କରେ । ମାନ୍ଦ ମାୟୃରେ ନମ୍ବୃମ ମାନ୍ଦା ମାଡ଼ିଲେ ମୃତ୍ୟୁ ମାଡ଼ିଆସେ । ମାୟୃବି ମହାକାଳ ମୈଥୁନରେ ମେହପ୍ରମେହାଦ ମ୍ଲେଚ୍ଛ ମୃତ୍ୟୁହୁତ୍ୟ ଓ ମୁଦ୍ରାବ୍ୟତ୍ୟର ମାଡ଼ ହୁଏ, ମାନମହତ ମରେ । ମୈଥୁନ ମୃତ୍ୟୁହୁତ୍ୟ ମହାମାନବ ମହାଜ୍ଞାନ ମହାଧନୀର ମାନ ମନସୁଖ ମାରେ । ମନ୍ଦ ଯୌନରୋଗସ୍ଥାନ ମହରଙ୍ଗା- ଖିଆ ମହା ସୁଖି ହୁଏ । ମାନବ ! ମାୟୃମୋହମମତା ମାର ମାୟୃମୃଗ ମହାକାଳକୁ ମାନସରୁ ମାର । ମ-ପଞ୍ଚକର ମର୍ମ—ମୋହନମୂରତର ମହା ପୂଜାରେ ମନନ ।

ମହାକ୍ରମକରେ ସମାଜର ମହତ ଯଜ୍ଞ ସମାପନ ପରେ ମହାଯୁଦ୍ଧରେ ମିଳିତ ମିତ୍ରପକ୍ଷର ମହାଯକ୍ଷ ମାନସରେ ମହାଶତ୍ରୁର ମହାପରାଜୟ ମହାଯାତ୍ରା ମହାମେରୁ ମହାପ୍ରଭୁଙ୍କଠାରେ ମନପ୍ରାଣରେ •ମାଗୁଣି ।

ମାଭୈ ମାଭୈ ମାଭୈ !

---

ମୟୂରଭଞ୍ଜ ମୁଦ୍ରା ଯନ୍ତ୍ରରେ ମୁଦ୍ରିତ ।